# ଅସଂଯତ ପଦମାଳା

## ଅସଂଯତ ପଦମାଳା (୧-୨)

### ବୟସ

ସମ୍ପ୍ରାପ୍ତ ବୟସେ ପ୍ରପାଥରଜସେ
ଅସ୍ତବ୍ୟସ୍ତ କର୍ମଶାଳା;
ତଥାପି ଲେଖୁଛି ସମ୍ଭ୍ରାନ୍ତିରେ କିଛି
ଅସଂଯତ ପଦମାଳା । ୧

*ପ୍ରପାଥରଜସ= ରାସ୍ତାର ଧୂଳି; ସମ୍ଭ୍ରାନ୍ତି= କ୍ଷୋଭ;*

ସେହି ପଦମାଳା ଦେବି ଅର୍ଭ ବାଳା
ପଦେ ପଦେ ଯିବ ପଢି;
ନ ଧରିବ ଦୋଷ ନ କରିବ ରୋଷ
ଅଗ୍ରେ ଅଗ୍ରେ ଯିବ ବଢି । (୨)

*ଅର୍ଭ= ପୁଅ; ବାଳା= ଝିଅ; ଅଗ୍ରେ= ଆଗକୁ;*

ବାଣୀପୁତ୍ର ୧୦-୦୭-୨୦୨୧

### ଐକ୍ୟ

ଏକତା ବଳରେ ଶାସନ କଳରେ
ଆସ୍ଥା ଦୃଢ କରେ ମନ;
ଆମ ଏ ରାଜନ ଜନବିଭାଜନ-
ଆବର୍ଜନ ବ୍ରଜାଙ୍ଗନ । ୩

*ବ୍ରଜାଙ୍ଗନ= ଚରାଭୂଇଁ;*

ବାଣୀପୁତ୍ର ୧୦-୦୭-୨୦୨୧

## ଅସଂଯତ ପଦମାଳା (୪)

## ଆୟୁ

ପ୍ରତିଟି ଶର୍ବରୀ ଆୟୁ ନିଏ ହରି
ଗୋଟିଏ ଗୋଟିଏ ଦିନ,
ତଥାପି ନୂତନ ପ୍ରତ୍ୟୁଷଦ୍ୟୋତନ
ଖୋଜେ ନର ପ୍ରଜ୍ଞାହୀନ । ୪

*ଦ୍ୟୋତନ= ପ୍ରଭା;*

ବାଣୀପୁତ୍ର ୧୦-୦୭-୨୦୨୧

ଅସଂଯତ ପଦମାଳା (୫)

## ଯୌବନ

ତରୁଣ ବୟସ ଅସୀମ ସାହସ
କୁକର୍ମେ ନ ଯାଉ ସରି,
କରେ ନା ଯୌବନ ପ୍ରତି-ଆଗମନ
ଗଲେ ଥରେ ଅପସରି । ୫

ବାଣୀପୁତ୍ର ୧୦-୦୭-୨୦୨୧

ଅସଂଯତ ପଦମାଳା (୬-୯)

## ପୁନର୍ଜନ୍ମ ଓ ସଂସ୍କାର

ଏହି ପୟୋଧରେ ଅବଦୋହ ଝରେ
ବିନା ଶିକ୍ଷାମନ୍ତ୍ରେ ଜାଣି
ନବଜ ସନ୍ତାନ ଜନନୀର ସ୍ତନ
କି ଭାବେ ଧରୁଛି ଟାଣି । ୬

*ପୟୋଧର= ନାରୀର ସ୍ତନ; ଅବଦୋହ= ଦୁଗ୍ଧ;*

ମରାଳଶାବକେ ପୁଷ୍କର ଉଦକେ
ବିନିକ୍ଷେପି ଦେଖ ଛଳେ,
ପ୍ରଶିକ୍ଷା ନକରୀ କିଭାବେ ସନ୍ତରି
ଲେଉଟି ଆସିବ ସ୍ଥଳେ ! ୭

ଅନାତ ମାର୍ଜାର          ଶୈଶବେ ତାହାର
ବ୍ୟାଧି ହେଲେ କଳେବରେ
କି ଭାବେ ଅନ୍ୱେଷି          ଲତାଗୁଳ୍ମରାଶି
ଔଷଧ ସେବନ କରେ ?   ୮

ବିନା ପ୍ରଶିକ୍ଷଣ          ସ୍ମୃତି ସଂଗ୍ରହଣ
ଜନ୍ମାନ୍ତରେ ଆସେ ଚଳି;
ଏ ସ୍ମୃତି ସଂସ୍କାର          ପୁନର୍ଜନ୍ମ ସାର,
ଏ ତ ସାକ୍ଷ୍ୟ ମହାବଳୀ ।   ୯

ବାଣୀପୁତ୍ର     ୧୦-୦୭-୨୦୨୧

## ଅସଂଯତ ପଦମାଳା (୧୦)

## ମାତୃତ୍ୱ

ଶୁଷ୍କ ମହାମରୁ          ଗର୍ଭୁ ଛାର ତରୁ
ଉଦକ ଆହାର ହରି
ମାତୃପଣ ବଶେ          ଫୁଲପତ୍ର ପାଶେ
ନିଏ ପୁତ୍ରଜ୍ଞାନ କରି । ୧୦

ବାଣୀପୁତ୍ର     ୧୦-୦୭-୨୦୨୧

## ଅସଂଯତ ପଦମାଳା (୧୧)

## ସେବା

ଦେଖ ଅନୁଭବୀ          ଅସ୍ତଗାମୀ ରବି
ଡୁବି ମଧ ଚକ୍ରବାଳେ
ଦେଉଅଛି ଫିକା          ଆଲୋକର ଶିଖା
ତା ଜୀବନ ଶେଷ କାଳେ । ୧୧

ବାଣୀପୁତ୍ର     ୧୦-୦୭-୨୦୨୧

## ଅଭ୍ୟାସ

ଦେଖ କେ ତପସ୍ୱୀ          ମଧରାତ୍ରେ ବସି
          ଅଛି କଠୋର ସାଧନେ,
କିଏ ନିଜ ରାତି          ଦିଏ ଅତିପାତି
          ହୀନ ସ୍ତେୟ ସମ୍ପାଦନେ । ୧୨

ବାଣୀପୁତ୍ର     ୧୦-୦୭-୨୦୨୧

## ରୁଚି

କିଏ ଖୋଜି ବୁଲେ          ତରୁଲତା ତୁଲେ
          ଛତ୍ରେ ଛତ୍ରେ ପ୍ରେମ ଧାରା,
ବିତରି ବିଦ୍ୱେଷ          କିଏ  କରେ ଦେଶ
          ରକ୍ତ ସ୍ନାତ ବର୍ଷ ସାରା । ୧୩

ବାଣୀପୁତ୍ର     ୧୦-୦୭-୨୦୨୧

### ଅସଂଯତ ପଦମାଳା  (୧୪)

ଅଦୃଶ୍ୟ ଭୂତଳେ          ସୁଶୀତଳ ଜଳେ
          ଘେନି ଫଲ୍ଗୁ ଯାଏ ଝରି,
ଫୁଟାଇ ମୃତ୍ତିକା          ଶୀକର କଣିକା
          ଏବେ ବି ଦିଏ ବିତରି । ୧୪

ବାଣୀପୁତ୍ର     ୧୦-୦୭-୨୦୨୧

### ଅସଂଯତ ପଦମାଳା  (୧୫)

ବାଣୀପୁତ୍ର     ୧୦-୦୭-୨୦୨୧

## ଆସ୍ଫାଳନ

ଝିଲ୍ଲିକା ପୁଙ୍ଗବ          ଇଷୀକା ପଲ୍ଲବ
          ପତ୍ତ୍ରେ ଖେଳି ନେତ୍ରୋଜ୍ଜ୍ୱଳ;
କହେ ମା ଯେ ତାଳ          ଆଶ୍ରିଲି ତତ୍କାଳ
          ଭାଜି ଗଲା ଧରାତଳ ।୧୫

ଝିଲ୍ଲିକା= ଝିଣ୍ଟିକା; ଇଷୀକା ପଲ୍ଲବ=କାଶ ଗଜା;

ବାଣୀପୁତ୍ର     ୧୦-୦୭-୨୦୨୧

## ଶୈଶବ

ନାହିଁ ନରଦେହୀ ଖୋଜିଦେବ କେହି
ହଜିଗଲା ଶଇଶବ,
ମୁକୁରିତ ଫୁଲ କଢସାଜି ମୂଳ
ବୃକ୍ଷେ ଗତି ଉପଦ୍ରବ । ୧୬

ବାଣୀପୁତ୍ର ୧୦-୦୭-୨୦୨୧

ଅସଂଯତ ପଦମାଳା (୧୭)

## ପୁନର୍ବୃଷ୍ଟି

ଆବର ବରଷା ରସା ତଳ ଦଶା
ନିଶାନାଶେ ଦେଲା ସାରି;
ସାରିଣୀ ରାଣୀର ନୀର କି ଅଧୀର,
ଦର୍ଦ୍ଦୁରେ ଦାର୍ଦ୍ଦୁର ବାରି । ୧୭

*ନିଶାନାଶ= ରାତ୍ରିଶେଷ; ସାରିଣୀ= ଛୋଟ ଝର; ଦର୍ଦ୍ଦୁର= ଗ୍ରାମ ସମାହାର; ଦାର୍ଦ୍ଦୁର= ମେଘର;*

ବାଣୀପୁତ୍ର ୧୧-୦୭-୨୦୨୧

## ଆଶାର ସାରସୀ

ଆଶାର ସାରସୀ ପଉଷ ଉଷସୀ
ଊଷର ସରସୀ ତୀରେ;
ସେ ନୀରେ ନିରେଖି, ଉପର ପରଖି
ଫେରିଲା ଅଧୀରେ ଧୀରେ ॥୧୮

*ଊଷର=ଲବଣାକ୍ତ; ଧୀରେ=ଧୀରା (wife) ପାଖକୁ*

ବାଣୀପୁତ୍ର (ଆଗର)

## ସନ୍ଧ୍ୟାଦୀପ

ଭନ୍ଦନା ବନ୍ଦନା କର ରେ ନନ୍ଦନା,
ସ୍ୱନ୍ଦନା ଚନ୍ଦନା ବାଳା,
ରଖ ରେ ଅଞ୍ଜନା ବ୍ୟଞ୍ଜନା ସର୍ଜନା,
ଆସଞ୍ଜନେ ସଞ୍ଜମାଳା । ୧୯

*ଭନ୍ଦନା= ବର୍ଷାକାରୀ ସୂର୍ଯ୍ୟାଂଶୁ; ସ୍ୱନ୍ଦନା ଚନ୍ଦନା= ଦୁଇଟି ନାମ; ଅଞ୍ଜନା= ଅଗ୍ନି; ବ୍ୟଞ୍ଜନା= ପ୍ରକଟ କରିବା; ଆସଞ୍ଜନ= ଆଙ୍କୁଡା, hook; ସଞ୍ଜମାଳା= ସନ୍ଧ୍ୟା ଦେବା ମାଳା;*

ବାଣୀପୁତ୍ର ୧୧-୦୭-୨୦୨୧

## ସନ୍ଧ୍ୟାପୂଜା

ବସିଅଛି ବୁଢୀ                    ଧରି କଣ୍ଢି ଚୂଡି
        ମସୁରା ବାଟଣା ଘଡି;
ପୂଜିବ ଦେବତା                    ପୂରିତ ହେବ ତା
        ଅଧୁରା କାମନା ବଡି । ୨୦

ବାଣୀପୁତ୍ର  ୧୨-୦୭-୨୦୨୧

## ମୁକ୍ତାକାଶ

ଏ ସାରା ରଜନୀ                    ଏକା ମୋ ସଜନୀ
        ସଞ୍ଜୀବନେ ଗଲା ବିତି,
ମୁକ୍ତାକାଶ ତଳେ                    ମୁକ୍ତାପ୍ରାୟ ଝଳେ
        ନକ୍ଷତ୍ରମାଳିକା ଦ୍ୟୁତି । ୨୧

ବାଣୀପୁତ୍ର  ୧୨-୦୭-୨୦୨୧

ଅସଂଯତ ପଦମାଳା  (୨୨-୨୩)

## ସିଂହଜନନୀର ଆଶୀର୍ବାଦ

ବୀର ତୁ କୁମର                    ବିଦ୍ୟାଗନ୍ତାଘର
        କମନୀୟ ରୂପସାରେ,
ତୁହି କିନ୍ତୁ ସୁତ !                    ଯେ କୁଳେ ସମ୍ଭୂତ
        ଗଜ ତହିଁ କେ ନ ମାରେ ।  ୨୨

ସିଂହ ଶିଶୁଦ୍ୱୟ                    ଚିହ୍ନିବେ ନିଶ୍ଚୟ
        ଆଜି ଅବା ତୋତେ କାଲି;
କି ଲାଗି ବିପନ୍ନ                    କରିବୁ ଜୀବନ
        ବେଳହୁଁ ଯା ଦୂରେ ଚାଲି ।  ୨୩

ବାଣୀପୁତ୍ର ୨୦୨୧-୦୭-୧୩

ଅସଂଯତ ପଦମାଳା  (୨୪-୨୬)

## ଇନ୍ଦ୍ରପ୍ରସ୍ଥ କହେ

ଇନ୍ଦ୍ରପ୍ରସ୍ଥ କହେ                    ଶ୍ରୀକୁରୁକ୍ଷେତ୍ର ହେ
        ଏ କି କଲ ଦୁର୍ବିସହ,
ମାନବର ବଂଶ                    ସେ ଦିନୁ ବିଧ୍ୱଂସ
        କି ଲାଗି ନ କଲ କହ ।   ୨୪
ଏ ଅତି ଇତର:                    ଆପଣା ଭିତର
        କନ୍ଦଳରୁ ପ୍ରଜାନାଶ,
ଲକ୍ଷେ ମୂଢ ରଜା                    ଉଡ଼େ ତୋଳି ଧ୍ୱଜା
        ଦେଲେ ସେ ପ୍ରମାଦେ ଝାସ ।୨୫

ସେ ଦିନୁ ଏ ଜାତି ମୂଢତାର ଖ୍ୟାତି
ଗ୍ରାମେ ଗ୍ରାମେ ସଂପ୍ରସାରି ,
ଆଜି ଘରେ ଘରେପଶୁ କରି ନରେ
ଧରାଇଛି ତରବାରି । ୨୬

ବାଣୀପୁତ୍ର ୨୦୨୧-୦୭-୧୫/୦୩:୧୭

ଅସଂଯତ ପଦମାଳା (୨୭-୨୮)

## ପଙ୍କୋଦ୍ଧାର

ସୁବିଶାଳ ସରୋବରେ
ପଙ୍କୋଦ୍ଧାର ପରି
ହୀନବଳ ଲଢିମରେ
ଭାଷାରକ୍ଷା କରି । ୨୭
କେବେ ସେ ଦିଶିବ ଶୁଭ୍ର
ହଟିବ କର୍ଦ୍ଦମ,
ସତେ କି ଦେଖିବ ନେତ୍ର,
ଦାଣ୍ଡଦ୍ୱାରେ ଯମ !! ୨୮

.ବାଣୀପୁତ୍ର ୨୦୨୧-୦୭-୧୮/୧୩:୫୪

## ଛନ୍ଦ ଓ ରାଗ

ଛନ୍ଦେ ସଂରଚନ ସରାଗ ଗାୟନ
ସୃଜେ କାବ୍ୟ-ସମ୍ମୋହନ;
ନିର୍ବିଦ୍ୟ ଲିଖନ, ଦର୍ଦ୍ଦୁର ଗାୟନ
ଅପରକ୍ତ କରେ ମନ । ୨୯

ବାଣୀପୁତ୍ର ୨୦୨୧-୦୭-୧୯/୦୫:୦୦

## ବାପଘର

ଯେତେ ଦୂରେ ଦେଲେ ଯୁଗ ଯେତେ ଗଲେ
ବାପଘର ବାପଘର,
ଭାଇ ମାତା ପିତା ଝୁଣ୍ଟିଲେ ଦୁହିତା
ନୟନେ ଲୋତକ ଝର । ୩୦

ବାଣୀପୁତ୍ର ୩୦୨୦୦୬୦୪

ଅସଂଯତ ପଦମାଳା (୩୧, ୩୨)

## ଛନ୍ଦୋପହାର

ଶୁଣ ମୋ ବନ୍ଦିନୀ        ହୃଦୟ ସ୍ପନ୍ଦିନୀ
        ପ୍ରେମାନୁବନ୍ଧିନୀ ବାଳା,
ତୋ ଗଲେ କନ୍ଦିନୀ        ଦେଲି ଏ ନନ୍ଦିନୀ,
        ଜ୍ୱାଳା-ପ୍ରବର୍ଷିଣୀ ମାଳା । ୩୧

*କନ୍ଦିନୀ= ବାଳିକା; ନନ୍ଦିନୀ= ଛନ୍ଦବିଶେଷ; ବର୍ଷା କରଉଥିବା;*

ବିଘନ ନିଶୀଥେ        ବିମନ ଇଙ୍ଗିତେ
        ବିଜନେ ଲାଗିଲେ ଭାରି,
ନିଗୂଢ ନିରବେ        ବିଧୁର ବିରବେ
        ନିରତେ ପଢିବୁ ନାରୀ । ୩୨

*ବିଘନ= ବାଧକ, hurting; ଇଙ୍ଗିତ= ଅନ୍ତରସ୍ଥ ଆନ୍ଦୋଳନ; ବିଧୁର ବିରବ= ଦୁଃଖର କାନ୍ଦ;*

ବାଣୀପୁତ୍ର   ୨୦୨୧୦୭୨୨୦୮୫୯

## ଅକ୍ଷରା

ଅପତି ପଥିକା        ଅଗତି ଗୀତିକା
        ସାରସୀ ସରସୀହୀନା;
ଅକ୍ଷତ ବିକ୍ଷରା        ଉଦ୍ଗୀତେ କାତରା
        ବିକ୍ଷତ ଅକ୍ଷରା ଦୀନା । ୩୩

*ଅପତି= ବିଧବା; ଅକ୍ଷତ= (ଆଶୀର୍ବାଦ) ଚାଉଳ; ବିକ୍ଷରା= ବିଞ୍ଚିବା; ଉଦ୍ଗୀତ= (ମନ୍ତ୍ର) ଗାୟନ;*
*ବିକ୍ଷତ= ଭଙ୍ଗା ଭଙ୍ଗା; ଅକ୍ଷରା= (ମୁଖର) ଧ୍ୱନି; ଦୀନା= ବିଚାରୀ;*

ବାଣୀପୁତ୍ର   ୨୦୨୧୦୭୨୨୬୨୦୩୫

ଅସଂଯତ ପଦମାଳା (୩୪)

## ପଦ୍ମେ ପଦ୍ମ ଶୋଭା

କମଳେ ଉଚ୍ଛଳ        କମଳ କେବଳ
        ଗଳ୍ପ-ଛଳ, ନାହିଁ ଦେଖା;
କିନ୍ତୁ ଦିବ୍ୟାନନେ !    ତୋ ପଦ୍ମବଦନେ
        ଦ୍ୱିପଦ୍ମନୟନ ରଖା । ୩୪

*ଉଚ୍ଛଳ= ବାହାରିଥିବା, springing forth*

ବାଣୀପୁତ୍ର   ୨୦୨୧୦୭୩୭୦୭୩୦

ଅସଂଯତ ପଦମାଳା  (୩୫,୩୬)

## କୁଳବଧୂ

ଧାବିନୀ ତୀରେ ତୀରେ
ମାନିନୀ ଧୀରେ ଧୀରେ
ଚାଲିଛି ଅବନୀରେ        ଅନାଇ;
ସତ କି ମଧୁବନ
ପରଖି ବଧୂମନ
ରଖିଛି ଫୁଲଧନ        ସଜାଇ । ୩୫

ବାଣୀପୁତ୍ର - ୨୦୨୧୦୭୨୯-୨୦୨୦

ସେ କାର କୁଳବଧୂ,
କେ ପାଖଦୂର ବନ୍ଧୁ
ନାହିଁ ଯା କେହି ତାର     ତୁଲେ ବି;
ଡାକନ୍ତେ ମନ୍ଦମଧୁ -
ଆସ କେ ଜନପଦୁ,
ସାଥ ଏ ଯୂଥ ମଧ୍ୟୁ      ମୁଁ ଦେବି । ୩୬
ବାଣୀପୁତ୍ର - ୨୦୨୧୦୭୩୦୦୭୦୫

ଅସଂଯତ ପଦମାଳା  (୩୭,୩୮)

## ପ୍ରଧାବିନୀ କହେ

ଝରି ଏ ସରିତ-        ବାରି ଅବାରିତ
        ସରି ତ ପାରିବ ନାହିଁ;
ସାରଥି କତିରେ        ତା ମତି ଅଛି ରେ,
        ଅଚିରେ ମିଶିବ ଧାଇଁ ।    ୩୭
*ସାରଥି= ସମୁଦ୍ର;*

ପରବତ କହେ        ତପତ ପ୍ରବହେ
        ରହି ଯା ମୋ ଅଲିଅଳି;
ନଦୀ କହେ ପିତା !      ପଡିପଦେ ସ୍ଥିତା,
        ସେ ଲାଗି ଯାଉଛି ଚଳି ।   ୩୮
*ମହୀଧର= ପର୍ବତ; ପ୍ରବହ= ବତାସ;*
ବାଣୀପୁତ୍ର   ୨୦୨୧୦୭୩୭୦୮୦୩

## ପ୍ରଧାବିନୀ କହେ

ବନସ୍ଥଳେ ଟପ ଟପ
ନଭଶ୍ଚର ବାରି,
ଗଛତଳେ ଗପସପ
କର ନର ନାରୀ । ୩୯
ନଭଶ୍ଚର= ମେଘ;
ବାଣୀପୁତ୍ର ୨୦୨୧୦୮୦୩୨୧୦୫

ଅସଂଯତ ପଦମାଳା (୪୦,୪୧)

## ପ୍ରଧାବିନୀ କହେ

କିଏ ରଚେ ଶବ୍ଦ
ମନ୍ତ୍ର ଉଚ୍ଚାରଣେ;
କେ କରେ ଆଧ୍ମାନ
ଯୁଦ୍ଧ-ଉଦ୍ଘୋଷଣେ । ୪୦
କିଏ ଲେଖେ ଶବ୍ଦ
ହୃଦ-ଉଦ୍ବେଳନେ,
ପଢି କିଏ ସ୍ତବ୍ଧ,
ଶବ୍ଦ-ବିସ୍ମରଣେ । ୪୧
ବାଣୀପୁତ୍ର ୨୦୨୧୦୮୦୧୨୧୦୫

## ଭୟାକୁଳ ନେତା

ହେଲେ ରାଷ୍ଟ୍ରନେତା ନିଯୁକ୍ତିବ୍ୟବସ୍ଥା
ସମ୍ପାଦନେ ଭୟାକୁଳ,
ତୋଳି ଉଚ୍ଚ ସ୍ୱର କହେ - ସ୍ୱନିର୍ଭର
ହୁଅ ମୋର ପ୍ରଜାକୁଳ । ୪୨
ବାଣୀପୁତ୍ର ୨୦୨୧୦୮୧୧୨୦୨୮

## ଭୟାକୁଳ ନେତା

ବେପଥୁ ପ୍ରବହ ପ୍ରଦାହ ଦୁଃସହ
ହୀମୋଦକେ କରେ ହ୍ରାସ;
ଏବେ - ତେଜି ନିବାସ,
କିଏ - ଭିଜିବ ଆସ ! ୪୩
(ବେପଥୁ= କମ୍ପମାନ; ପ୍ରବହ= ପବନ)

ବାଣୀପୁତ୍ର ୨୦୨୧୦୮୧୧

ଅସଂଯତ ପଦମାଳା (୪୪, ୪୫)

## ଅଭାଗିନୀ

କେତେକ ଭଗିନୀ ଏତେ ଅଭାଗିନୀ,
ଦେବେର୍ଷ୍ୟ ଜନମ ପାଇ,
ଚଳନ୍ତି ବିଗ୍ରହ କରନ୍ତି ବିକ୍ରୟ
ଉଦରପୋଷଣ ପାଇଁ । ୪୪।
କେବେ ତ କାମନେ ଜନ୍ୟେ, ନିକାଞ୍ଚନେ
ଜାଗିଥିବ କେତେ ଆଶା:
କାହାର ଭାମିନୀ ସ୍ନେହିତା ସଙ୍ଗିନୀ
ସାଜିବାର ଅଭିଳାଷା । ୪୫।

*ଦେବେର୍ଷ୍ୟ ଜନ୍ମ= ଦେବତାଙ୍କ ଈର୍ଷାଯୋଗ୍ୟ ମାନବଜନ୍ମ; ବିଗ୍ରହ= ଦେହ, ଦେବମୂର୍ତ୍ତି; ଜନ୍ୟ= ଗୋଷ୍ଠୀ, ସମାଜ, ହାଟ; ଭାମିନୀ= ପ୍ରେମିକା;*

ବାଣୀପୁତ୍ର ୨୦୨୧୦୮୧୧୨୨୩୦

## ଦୁର୍ଲଭ ସିନ୍ଦୂର

ଦୂରେଇ ରହିଲେ ଜୀବନସାଥୀ
ଦିବସ ଲାଗିବ ଉଆଁସ ରାତି ।
ପର୍ବତେ ଦିଶିବ ସିନ୍ଧୁ;
ପାଶେ ତେଣୁ ସାଥୀ ମଥା ଦିଅ ପାତି
ପିନ୍ଧାଇ ଦେବି ଗୋ
ଦୁର୍ଲଭ ସିନ୍ଦୂର ବିନ୍ଦୁ । ୪୬

ବାଣୀପୁତ୍ର ୨୦୨୧୦୮୧୨୧୭୪୫

## ବିରୋଧ

ଥିଲେ ହେଁ ବିରୋଧ, ରୋଦନେ
କାର,
ନ କର
କରତାଳ;
ତା ହିତରେ ଥରେ ତୋଳ ରେ
ତୋର
ଦୁଷ୍କର
କରବାଳ ॥ ୪୭ ॥

ବାଣୀପୁତ୍ର - ଜୁନ୍ ୨୦୧୮
ରଜ - ୨୦୧୮

ବରଷେ ବରଜି ବିରାଜେ
 ଆଜ
 ବିରଜ
 ରଜ ଯାତ;
ବରଷା ରୁଷିତା ଶିଥିଳା,
 ପୁରେ
 ପ୍ରଖର
 ଖରପାତ ॥ ୪୮ ॥
ବାଣୀପୁତ୍ର ଜୁନ୍ ୨୦୧୮

## ଅସଂଯତ ପଦମାଳା (୪୯,୫୦)

## ମଦୁଆ କୁମର କଥା

ମଦୁଆ କୁମର ଜନନୀ ବେକର
 ଗହଣା ବିକିଲା ପରି
ଭାଗୁଆ ଇସାରେ ଫେକୁଆ ନିଶାରେ
 ପୁଞ୍ଜି ଦିଏ ବିକ୍ରି କରି ॥ ୪୯ ॥
୨୦୨୧୦୮୧୫୨୧୦୦

ପୁତ୍ର ଘୋଡାମୁହାଁ ଆଦିକାଳୁ ଥୁଆ
 ମୂଳଦୁଆ ଦିଏ ବିକି,
ସେଭାବେ ସମ୍ପତ୍ତି ବିକୁଛ ନୃପତି
 କିଛି ନ ପାରିଲ ଶିଖି ॥ ୫୦ ॥
ବାଣୀପୁତ୍ର ୨୦୨୧୦୮୧୬୦୯୪୫

## ଜାତି-ଧର୍ମ-ଭାଷାଦି ଭେଦ

ଗର୍ବକରୁଥାଅ: ମୁଁ ଅମୁକପୁଅ,
 ଏ ମୋ ଭାଷା, ଧର୍ମ, ଜାତି;
କାହିଁକିନା ପ୍ରଭୁ ସହିଲେବି ସବୁ,
 ଗର୍ବ ଜମା ନ ସହନ୍ତି ॥ ୫୧ ॥
ବାଣୀପୁତ୍ର ୨୦୨୧୦୯୨୧୦୯୧୦

## କାମୁଡା କୁକୁର କଥା

ଯଦି ମୋ କୁକ୍କୁର ନ ଜଗି ମୋ ଘର
 କାମୁଡିବ, ଆସେ ଧାଇଁ,
ଦେବି ତାକୁ ତଡି ଅବା ଗୁଳି କରି,
 ବିକଳ୍ପ ଖୋଜିବି ନାହିଁ ॥ ୫୨ ॥

ବାଣୀପୁତ୍ର ୨୦୨୧୦୯୨୦2୨୨୩୫

## କୃପାଜନ୍ମ

ଅସୀମ କୃପାରେ ଦୁଃଖ-ପାରାବାରେ
ଜୀବନ କରିଛ ଦାନ ।
ଏ କୃପା ନିର୍ଝର ଝରୁ ନିରନ୍ତର
ଜନ୍ମେ ଜନ୍ମେ ଭଗବାନ ॥ ୫୩॥

ବାଣୀପୁତ୍ର ୨୦୨୧୦୯୨୨୧୪୧୨

## ଧୂର୍ତ୍ତଠାରୁ ଧୂର୍ତ୍ତ

ଅଜ୍ଞତା କାରଣେ ତୋତେ ବୁଝି ମୁଁ ନ ଥିଲି,
ଜାଣିଲି ତୁ ମୂର୍ଖ ନୁହେଁ
ଧୂର୍ତ୍ତଠାରୁ ଧୂର୍ତ୍ତ;
ତୁ କାହୁଁ ମାନିବୁ କଥା ମୁଖର ଭାଷାରେ,
ତୋ ଲାଗି ପ୍ରହାର ଲୋଡା
ମୁହୂର୍ତ୍ତ ମୁହୂର୍ତ୍ତ ॥ ୫୪॥

ବାଣୀପୁତ୍ର ୨୦୨୧୦୯୨୪୧୫୪୮

## ଇନ୍ଦ୍ରପ୍ରସ୍ଥ କହେ

କୁରୁକ୍ଷେତ୍ରକୁ ଇନ୍ଦ୍ରପ୍ରସ୍ଥ
ପଚାରୁଛି ଅହରହ:
ମାନବକୁଳକୁ ସମୂଳେ କିଲାଗି
ଧ୍ୱଂସ ନ କଲ କହ ॥ ୫୫॥

ବାଣୀପୁତ୍ର ୨୦୨୧୦୮୦୪୧୧୨୫

ଅସଂଯତ ପଦମାଳା (୫୬)

## ଆସିଲେ ଦୁଃଖ

କବିତା ମାଳିକା ଦେଲି ରେ ବାଳିକା
ଯତନ କରିକା ରଖ
କେବେ ଦିନେ ଦିନେ ପଢ଼ିବୁ ବିଜନେ
ଆସିଲେ ଜୀବନେ ଦୁଃଖ ॥ ୫୬॥

ବାଣୀପୁତ୍ର ୨୦୨୧୧୦୦୨୨୦୨୫

## ଅସଂଯତ ପଦମାଳା (୫୭, ୫୮, ୫୯)

# ପଦ୍ମତୋଳା

ସାଜି ଉନ୍ମାଦିନୀ ହେଲୁ ଯା ସଙ୍ଗିନୀ
ଅଦିନିଆଁ ପ୍ରେମ ବଳେ
ବିସ୍ତାରି ନୟନ କର ତୁ ଶ୍ରବଣ
ପଦ୍ମତୋଳା ବେନି ଡୋଳେ । (୫୭)

ପଡିଲୁ ବନ୍ଧନେ ତୋ ପ୍ରେମସ୍ପନ୍ଦନେ
ମୋ ପ୍ରାଣ ଛନ୍ଦନ ପାଇଁ,
ଜାଣି ଥା ଏ କଥା ନ ହେବ ଅନ୍ୟଥା,
ମୋ ପନ୍ଥା କେ ଜାଣି ନାହିଁ । (୫୮)

ତୁହି ବିଳେ ବିଳେ ଗଲେ ତିଳେ ତିଳେ
ସମ୍ମୋହନୀ ବଳେ ନାରୀ,
ମୁଁ ଥିବି ଭୂଧରେ ଉଦଗ୍ର କନ୍ଦରେ
ବଶୀକାର ସମୁଚ୍ଚାରୀ । (୫୯)

**ଲଲାଟେନ୍ଦୁ କବି ୨୦୨୧୧୦୧୪୧୧୦୫**

# ବୁଝା ମୋତେ ଚଢ଼ଇବାହା

ଆସିଲା ବରଷା ଚଢ଼େଇର ବସା
ଧସାଇଲା ଗଛ ତଳେ
କାନ୍ଦେ ପକ୍ଷିମାତା କି କଲୁ ବିଧାତା
ଭାସିଲେ ମୋ ଛୁଆ ପଲେ ॥ ୬୦ ॥

ନ ଶୋଇ ନ ଖାଇ ଗୋଟାଇ ଗୋଟାଇ
ମାସେ ଧରି ଘାସ କୁଟା
ଗଢ଼ି ଥିଲି ଘର ଛୁଆ ଲାଗି ମୋର
ହୃଦୟବିହୀନ ତୁ ଟା ॥ ୬୧ ॥

ବୁଝା ମୋତେ ଥରେ କି ଅଛି ଗ୍ରନ୍ଥରେ
କି ପାପର ଥିଲା ଭାର
ଯାହା ଥିବ ଥାଉ ଏତ ମହା ଦାଉ,
ଘର କଲୁ ଛାରଖାର ॥ ୬୨ ॥

କହୁ ଭୋଗଯୋନି - ନାହିଁ କର୍ମ ପୁଣି

পাপপুণ্যে অধিকার,

ତେବେ କି ପାପରେ ଏତେ ଅନ୍ୟାୟରେ

କଲୁ କ୍ରୁର ବ୍ୟବହାର ॥ ୬୩॥

ପ୍ରଥମ ସୃଷ୍ଟିରେ ବଡର ତଣ୍ଟିରେ

ଛୋଟ ମାଛ ହେଲା ସ୍ୱାହା

ପାପୀନରଜନ୍ମ ନ ପାଇ ଅଧମ

କିଆଁ ମଲା ଚଉବାହା ॥ ୬୪॥

ବାଣୀପୁତ୍ର ୨୦୨୩୦୭୩୬୬

## ଅସଂଯତ ପଦମାଳା (୬୫-୬୭)

## ନ ଧରିବ ଦୋଷ

ଆଶୟେ ମୋହର ଶୋକର ଲହର

ପ୍ରହର ପ୍ରହର ଛୁଟେ

ଏ ଗିରି ଗହ୍ୱର ଅରଣ୍ୟ ସହର

ସେ ଲୁହର ଗୀତ ଲୁଟେ ॥ ୬୫॥

ଏବେ ଆଉ କାହିଁ ଲେଖି ପାରୁ ନାହିଁ

ଚାହିଁ ଚାହିଁ ସାରା ରାତି

ସମ ଅର୍ଦ୍ଧସମ ଅଥବା ବିଷମ

ମନୋରମ-ଉପଜାତି ॥ ୬୬॥

କର ନାହିଁ ରୋଷ ଧର ନାହିଁ ଦୋଷ

ହୁଅ ତୋଷ ପୁଅ-ଝିଅ

ନିଶ୍ଚେ ଅହର୍ନିଶ ଲଭିବ ଆଶିଷ

ରହି ଥିବା ଯାକେ ଦିହ ॥ ୬୭॥

ବାଣୀପୁତ୍ର ୨୦୨୩୦୮୧୨୧୩୧୪

## ଅସଂଯତ ପଦମାଳା (୬୮-୭୧)

## ମରଣର ଦ୍ୱାରଦେଶେ

ରଣଭୂମେ ରକ୍ତାକ୍ତ ମୁ

ସମ୍ମୁଖରେ ପ୍ରତ୍ୟକ୍ଷ ମରଣ

କ୍ଷଣଦା ସାଜି ତୁ ମୋତେ

ଶୁଣାଉଛୁ ନୂପୁର ନିକ୍ୱଣ । ୬୮

ବାରଦ୍ୱାରେ ବୁଲି ନାହିଁ
ଅନାହାରେ ମରି ଶତବାର
ସାରବତ୍ତା ଲାଗି ମାତ୍ର
କରିଅଛି ମୃତ୍ୟୁ-ଅଭିସାର ।୬୯

କରବାଳ ଧରି କରେ
କି କରିବି ମାଣିକ୍ୟ ନିକର
ଝରକା ନିକଟେ ମୋର
ଖରସ୍ରୋତା ଶୋଣିତନିର୍ଝର ।୭୦

ବାହୁଡି ଯା ରୂପବତୀ
ଖୋଜି ନିଅ ଆନ କାର ବାହୁ
ଆଉଟା ପରାଣେ ମୋର
ପ୍ରେମଫାଶ ଲୋଡା ନାହିଁ ଆଉ ।୭୧
ଲଲାଟେନ୍ଦୁ କବି 202309291729

## ନୟନେ ଦେଖିବ ରୁହ

ତୁମକଥା ଭାଳି ଦେଇଛି ଯେ ଢାଳି
ଛାତି ଜାଳି ଆଖି ଲୁହ;
ପ୍ରେମ-ଉପବନେ ରଖିଛି ଯତନେ
ନୟନେ ଦେଖିବ ରୁହ । ୭୨
ଲଲାଟେନ୍ଦୁ କବି 20230319

## ଦେଖି ଯା ବାରେ

ନାହିଁ ପ୍ରୟୋଜନ ତୋର ଉପାର୍ଜନ
ମଣିରତ୍ନ ଗଳାହାରେ,
ନ ଆସୁ ଭାରିଯା ତୁ ଆସି ବୁଲି ଯା
ଦେଖି ଯା ଦେଖି ଯା ବାରେ ।
ଲଲାଟେନ୍ଦୁ କବି 202311121612

## କବିର ନିବାସ

ବହୁ ଦୂର
ଦେଖିଲେ ବି
ଲଙ୍ଘି ବନ-
ଗିରି-ଚକ୍ର-
ବାଳେ

ବାସ ତାର
ଜାଣେ କବି
ଦୀନହୀନ
ଯହିଁ ଲୋତ୍ର
ଢାଳେ । ୭୪

ଲଲାଟେନ୍ଦୁ କବି 2024-03-26/12:46

## ମହୋତ୍ସବ

ପୁତ୍ର ମୋର
କାନ୍ଦନା ରେ
ନବବସ୍ତ୍ର
କ୍ଷୀରୀ ଅନ୍ନ
ପାଇଁ;

ନିର୍ଦ୍ଧନର
ପଞ୍ଜିକାରେ
ସାରା ବର୍ଷ
ପର୍ବ ଲଗ୍ନ
ନାହିଁ । ୭୬

ଲଲାଟେନ୍ଦୁ କବି 2024-03-26/11:22

# ଚନ୍ଦ୍ରଦର୍ଶନ

ଦେଖି ଚନ୍ଦ୍ର
ଖୋଜେ କିଏ
ସୁନାଗଢା
ଏକଗୋଟି
ଥାଳ;
ଶୂନ୍ୟୋଦର
ମନ ଚାହେଁ
ଖସୁ ପୋଡା
ସେହି ରୁଟି
ଫାଳ । ୭୬

ଲଲାଟେନ୍ଦୁ କବି 2024-03-27/11:27

# ଯୁଦ୍ଧଜୟ

ଘୋର ରଣ
ଜିତିବାରେ
ଅନ୍ତଃପୁର
ଉତ୍ସବମୁଖର
ମୃତସୈନ୍ୟ
ପରିବାରେ
ପ୍ରତି ନେତ୍ର-
କଣେ ଅଶ୍ରୁଝର ।୭୭

ଲଲାଟେନ୍ଦୁ କବି 2024-03-28/09:07

ଅସଂଯତ ପଦମାଳା (୭୮-୮୦)

## ଯରି ଯାଇ ନାହିଁ ମନ

ଶରତ୍‌ସୁବିମଳ ହେମନ୍ତ ହେମାଳ
ଶିଶିରେ ଶିଶିରପାଣି
ବସନ୍ତେ ମଳୟ ଗ୍ରୀଷ୍ମେ ରୌଦ୍ରଭୟ
ଶେଷେ ଉଗ୍ରା ବର୍ଷାରାଣୀ । ॥ ୭୮

ଏ ମଧ୍ୟେ ବିତିଲା ହାତରେ ଯା ଥିଲା

ଖୋଜିଲା ବୟସ ବାକି ।

ଅନ୍ତକାଳେ ଥରେ ସେ ବନ ଭିତରେ

ପରସ୍ପରେ ଭେଟିବା କି । ।। ୭୯

ସରି ଯାଇ ନାହିଁ ସ୍ମୃତିର ପୂନେଇଁ

ମରି ଯାଇ ନାହିଁ ମନ ।

ନିଶାର୍ଦ୍ଧ ଗଗନେ ପ୍ରେମ ଉପବନେ

ଦିଶେ ତୁମ ଚନ୍ଦ୍ରାନନ । ।। ୮୦

ଲଳାଟେନ୍ଦୁ କବି 2024-03-28/09:07

## କର ଏ ଦରିଆ ପାରି

ଦି ଧାରେ ଅନଳ ପଛେ ରସାତଳ

ଆଗରେ ସାଗର ବାରି

ମୁଁ ଦୀନ ପଥିକ କେ ଅଛ ନାବିକ

କର ଏ ଦରିଆ ପାରି । ।। ୮୧

ଲଳାଟେନ୍ଦୁ କବି 202403271724

## ବିଦଗ୍ଧଲଳନା

ଆଗୋ ପ୍ରମୁଗ୍ଧବଦନା ନିଧିସିନ୍ଧୁ ରାଣୀ,
ରାଜନ୍ୟ, ପଣ୍ଡିତ, ବଣିକ୍, ପ୍ରଭୃତାଧିକାରୀ !!
ଆନନ୍ଦମଗ୍ନ ସକଳେ ରହ ନୃତ୍ୟ ଗୀତେ
ତେଣେ ବିଦଗ୍ଧଲଳନା ମରୁ କାନ୍ଦି କାନ୍ଦି । ।। ୮୨

ଛନ୍ଦ: ବସନ୍ତତିଳକା (ତଭଜା ଜଗୌ ଗଃ)

L. Kabi 202403272157

ଅସଂଯତ ପଦମାଳା (୮୩-୮୪)

## କପାଳଲିଖନ

ଧନ କି ଯୌବନ          ଜ୍ଞାନ ମାନ ଜନ -
କହୁ କେ - ନେ ଏକ ବୋଲି
ବିନା ବିଳମ୍ବନ          କପାଳଲିଖନ
ଖୋଜି ମୁଁ ଆଣିବି ତୋଳି ॥ ୮୩

ଗୁଣୀ ଧନୀ ମାନୀ          ଯଶସ୍ୱୀ ବିଜ୍ଞାନୀ
ବଳବନ୍ତ ଭୂମଣ୍ଡଳେ
ଥିଲେ ଭାଗ୍ୟବଳ ସର୍ବେ କୋଳାହଳ
କରିବେ ଚରଣ ତଳେ ॥ ୮୪

L. Kabi 202403290229

## ପ୍ରିୟା ଗଲା ପରେ

ପ୍ରିୟା ଗଲା ପରେ          ଏ ପତ୍ରମର୍ମରେ
ବନପ୍ରସ୍ଥ ଉଠେ ଥରି,
ବିଷମ ଦିନାନ୍ତେ          ବିରାଜେ ଅଗ୍ରତେ
ବିପର୍ଯ୍ୟସ୍ତ-ବିଭାବରୀ ।          ୮୫

20240415

## ଜ୍ୟୋସ୍ନା ଉଛୁଳା ରାତ୍ରି

ଜ୍ୟୋସ୍ନା ଉଛୁଳା          ରାତ୍ରି ଗୋ ତୋର
ଶୁଭ୍ର ପଣତ ତଳେ
କିମ୍ପାଁ ସବୁଜ          ବନମର୍ମରେ
ମୂର୍ଚ୍ଛନ ଏତେ ଚଳେ ।
ହୈମ ପବନ          ଭରେ ସ୍ପନ୍ଦନ
ବେପଥୁ ସଞ୍ଚରଣେ
ଅନେକ ହଜିଲା ସ୍ମୃତିର ପୁଷ୍ପ
ଉଲ୍ଲସି ଉଠେ ମନେ ।     ୮୬

ବାଣୀପୁତ୍ର 202304031414

## ଅସଂଯତ ପଦମାଳା (୮୮-୮୮)

# ଅବୋଧ ଗ୍ରନ୍ଥ

ସଂସାର ଅବୋଧ ଗ୍ରନ୍ଥ
ସ୍ୱପ୍ନଠାରୁ ହୀନ
ଅପାର ସାଗର ସ୍ରୋତ,
ନର କ୍ଷୁଦ୍ର ମୀନ ।
ପ୍ରଭଞ୍ଜନ ପ୍ରବାହନେ
ପ୍ରାଣୀ ପନ୍ନ ପତ୍ର
ଅଦମ୍ୟ ଅରଣ୍ୟାନଳେ
ଅସହାୟ ତନ୍ତ୍ର । ୮୭

ଚତୁଷ୍ପାର୍ଶ୍ୱେ ଭାଗ୍ୟ କରେ
କ୍ରୂର ଅଟ୍ଟହାସ୍ୟ
ପୃଥ୍ୱୀ ସାରା ଛତ୍ରେ ଛତ୍ରେ
ମରଣର ଲାସ୍ୟ,
ବୃଦ୍ଧ ଦେଖେ ନେତ୍ର ଖୋଲି
ଆହା କି କରୁଣ
ପୃଷ୍ଠତ ବିରାଜେ ବୋଲି
ନ ଦେଖେ ତରୁଣ ।୮୮

L. Kabi  20240326/14:26

## ଅସଂଯତ ପଦମାଳା (୮୯-୯୦)

## ମନ୍ଦିରେ ହଜିଲା ଚାବି

ମନ୍ଦିରେ ହଜିଲା ଚାବି ପରିକ୍ରମଣରେ
ମନ ଯେଣୁ ଥିଲା ତୁମ ହିନ୍ଦୁ-ପଠାଣରେ ।
ଛାଡିଥିଲ ଘର ଯେଉଁ ଚୌକିଦାର ହାତେ
ସେହି ଅଛି ଚୋରଦଳ ସରଦାର ସାଥେ । ୮୯

ଭଲ ହେଲା ପାଇ ନାହିଁ ସେ ପନ୍ଦର ଲକ୍ଷ
ପାଇଥିଲେ ନେଇଥାନ୍ତେ ଚୋର ସବୁ ତକ ।
ଯାହା ଗଲା ଯାଉ ଏବେ ଭଜ ଅବିରାମ
ଭକ୍ତି ଭରେ କହ ସଦା ଜୟ ଜୟ ରାମ ।   ୯୦

L. Kabi   202404042344

## ଭାବ-ଉଚ୍ଛଳ ମନ

ଆସିଲା ସନ୍ଧ୍ୟା          ବିଶ୍ୱଗନ୍ଧା
ନେତ୍ର  ମୁଦିବା ବେଳ
ମାଟିର ବାସ୍ନା          ସାଥୀରେ ଜ୍ୟୋସ୍ନା
ଅଦ୍ଭୁତ ରଚେ ଖେଳ ।
ଶୋଇ ଯା ଶୋଇ ଯା ଧନ
ଶାନ୍ତ ତୁ କର          ଶ୍ରାନ୍ତ ଶରୀର,
ଭାବ-ଉଚ୍ଛଳ ମନ ।   ୯୧

ବିଶ୍ୱଗନ୍ଧା= ପୃଥିବୀ;

ଲ. କବି          202402260706

## ଅସଂଯତ ପଦମାଳା (୯୨-୯୯)

*ଭ୍ରମଣକାହାଣୀମାଳା*

### ଅଜଣା ଡଗରେ

ଅଗଢା ନଗରେ          ଅଜଣା ଡଗରେ
ବୁଲିଛି ଅନେକ ରାତି
କି ଦିନ ଯାଇଛି          କି ଚିଜ ପାଇଛି
ସବୁ ମୁଁ କହୁଛି ସାଥୀ ।   ୯୨

202403311151

### ରାତି ଉଜାଗରେ

ରାତି ଉଜାଗରେ          ଥାଇ ମୁଁ ଯା କରେ
ଭାଳି ତୁ ପାରିବୁ ନାହିଁ
ରତନଦୀପର          ସପନନିକର
ଗୋଟାଇ ଆଣିଛି ଯାଇ ।   ୯୩

202403310641

**ଜାଦୁଗର ଦେଶେ**

ଜାଦୁଗର ଦେଶେ ସାଧୁଜନ ବେଶେ
ଆଣିଛି କୁହୁକ ମାଳା
କେବେ ତୋ ବଦନ ହେଲେ ମୋ ଦର୍ଶନ
ତୋ ଗଳେ ଦେବି ରେ ବାଳା । ୯୪
202403310842

**କୁହୁକ ନଗରେ**

କୁହୁକ ନଗରେ ଭୂରୁହ ପଥରେ
ଛିଡା "ସୁଖୀ ରଜାପୁଅ,"
ଅଭ୍ରଗ ପଚାରେ ଚଞ୍ଚଳ ବତା ରେ
କିଆଁ ତୋ ଆଖିରେ ଲୁହ । ୯୫
202403310747

**ପରୀରାଜ୍ୟ ଜଳେ**

ପରୀରାଜ୍ୟ ଜଳେ ପଶି ଭାଗ୍ୟ ବଳେ
ଆଣିଛି ପଦୁଅଁ ଫୁଲ
ଦେଖି ତାକୁ ଯଦି ନେଇ ଯାଉ ଗଧୀ
ତୋ ପ୍ରେମ ହେବ ଉଚ୍ଛୁଳ । ୯୬
202403310931

**ଜୀବନ-ନଗରେ**

ଜୀବନ-ନଗରେ ରିବନ ରଙ୍ଗରେ
ଆହା କି ରୁଚିର ଫୁଲ,
ମୃଦୁଳ ସଜଳ କୁସୁମ ସକଳ
ସବୁଥିରେ ଅଶ୍ରୁ ଠୁଳ । ୯୭
202404012421

**ଦିଶାନ୍ତ ସହରେ**

ଦିଶାନ୍ତ ସହରେ ନିଶାନ୍ତ ପ୍ରହରେ
ମନଜିଣା ବାଦ୍ୟରୀତି
ଶୁଣେ କାନ ପାତି ନୁହେଁ ତା ପ୍ରଭାତୀ,
ସେ ଅନାଥବାଳା ଗୀତି । ୯୮
202404021431

**ଗଗନମଣ୍ଡଳେ**

ଗଗନମଣ୍ଡଳେ ଅନ୍ତ ସ୍ଥଳ ତଳେ
ସପ୍ତସିନ୍ଧୁ ହଜା ଜଳ
ଆଦି କାଳୁ ନର- ନାରୀ ବାଳୁତର
ଅଶ୍ରୁ ମାତ୍ର ଛଳ ଛଳ । ୯୯
202404011601

ଅସଂଯତ ପଦମାଳା (୧୦୦-୧୦୩)

**ସଜଫୁଲ ଶୁଣ ଶୁଣ**

ଆମ ଅଗଣାର
ସଜ ଫୁଲ ଶୁଣ ଶୁଣ
ଜାଣ କି ଏ ଘରେ
ଅଛି କି ନା ତେଲ ଲୁଣ ।
ଅଛି କି ନା ଘରେ
ସ୍ନେହ ଶ୍ରଦ୍ଧା ମିଠା କଥା
କେତେ ଅଛି କାହା
ମନେ ଆନ ଲାଗି ବ୍ୟଥା । ୧୦୦

ଯଦି ଅଛି ଜଣା
ଛୁଟାଇ ତୁମର ବାସ
ଫୁଟାଇ ଦେବ କି
ବ୍ୟଥିତ ବଦନେ ହାସ ।
ସେହି ବାସ ମିଶା
ବିତରି ମଧୁର ଗୀତ
ଆମ କଥା ଦୂରେ
କରିବକି ପରିଚିତ । ୧୦୧
ଲଲାଟେନ୍ଦୁ କବି 202403210941

**ବ୍ୟାଖ୍ୟା: ସଜଫୁଲ ଶୁଣ ଶୁଣ**

ଅଗଣା ମୋ ଭାଷାପୁରେ
କାବ୍ୟବନ ତୁଲ
ସେ ଉଦ୍ୟାନେ ସାହିତ୍ୟର
ଟିକି ସଂସ୍ଥା-ଫୁଲ ।

ଫୁଲ କି ମଥାରେ ଖାଲି
ଚଢିବାକୁ ଚାହେଁ,
କି ଅଛି କି ନାହିଁ ଘରେ -
କିଛି ତା ନ ଯାଏ ? ୧୦୨

ଏହିପରି ନାନା ପ୍ରଶ୍ନ
ଉଠିବାରୁ ମନେ
ଲେଖି ଦେଲି କିଛି ତହୁଁ
ମାତ୍ର ସଙ୍କେତନେ ।
ଅନେକ ଗୋପନ ଭାବ
ମୌନତା ଭିତରେ
ପଢି ନାହଁ ଭଲ ଯଦି,
ପଢ ଆଉ ଥରେ । ୧୦୩

**ଲଲାଟେନ୍ଦୁ କବି 20240321**2744

ଅସଂଯତ ପଦମାଳା (୧୦୪-୧୦୫)
ପଢ ନା କବିତା

ପଢନା କବିତା କେହି ଆଶାଶ୍ରୟୀ ନର
କବିତାରେ ନାହିଁ ରତ୍ନ ମାଣିକ୍ୟପଥର ।
ନାହିଁ ଜନ ପରିଜନ ମାନପ୍ରସ୍ତାବନ
ନାହିଁ ନନ୍ଦନକାନନ ରମ୍ୟ ଉପବନ ॥୧୦୪

ଶୂନ୍ୟଗର୍ଭା କବିତାରେ କର୍ମତୃପ୍ତି ନାହିଁ
ସୁଖଶାନ୍ତି ସମ୍ଭାବନା ଶ୍ରମମୁକ୍ତି ନାହିଁ ।
ନାହିଁ ଚନ୍ଦ୍ରତାରା ମେଘ ବସନ୍ତମଳୟ
ଅଛି ପ୍ରଚ୍ଛନ୍ନ କେବଳ କବିର ହୃଦୟ ॥ ୧୦୫

**ଲଲାଟେନ୍ଦୁ କବି 202403212021**